'ବେଦଲ୍'ଙ୍କ

# କୌମୁଦୀ ଓ ମଦନ

—ଅନୁବାଦ—

ଅନନ୍ତ ପଟ୍ଟନାୟକ

—ପ୍ରକାଶକ—

ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ-୨



—ପ୍ରଥମ ମୁଦ୍ରଣ—

୧୯୫୮



ମୂଲ୍ୟ ଆଠଅଣା ମାତ୍ର



—ଃ ମୁଦ୍ରଣ ଃ—

ବିଶ୍ୱମ୍ଭର ପରିଡ଼ା

ପ୍ରଜାତନ୍ତ୍ର ପ୍ରେସ, କଟକ

# ସୂଚନା

ସଂକ୍ଷେପରେ "ବେଦିଲ୍" ନାମରେ ପରିଚିତ ଉର୍ଦ୍ଦୁ ଓ ତାଜିକ୍ ସାହିତ୍ୟରେ ଜଣେ ଚିରସ୍ମରଣୀୟ କବି ଥିଲେ। ଅବଦୁଲ କାଦେର ବେଦିଲ୍‌ଙ୍କ ଅମର ରଚନା "କୌମୁଦୀ ଓ ମଦନ" ଋଷ୍‌ଭାଷାରେ ଅନୂଦିତ ହୋଇଛି। ସେଥିରୁ କେତେକ ଅଂଶ 'ସୋଭିଏତ୍ ଦେଶ' ପାକ୍ଷିକପତ୍ରିକାରେ ଓଡ଼ିଆରେ ତର୍ଜମା କରାଯାଇ ପ୍ରକାଶିତ ହୋଇଥିଲା। କବି ବେଦିଲ୍‌ଙ୍କ ସରସ ରଚନାର ଆସ୍ୱାଦ ପାଇବାରୁ ବଞ୍ଚିତ ଅନୁବାଦକ କେବେହେଲେ କବିଙ୍କର ଏହି କରୁଣ ପ୍ରଣୟାତ୍ମକ କାବ୍ୟ ପ୍ରତି ଯଥାର୍ଥ ସମ୍ମାନ ଦେଖାଇବାକୁ ସମର୍ଥ ହୋଇ ନ ଥିବ, ଏହା ନିଶ୍ଚିତ। ତଥାପି ଅନୁବାଦ ପଢ଼ି କେହି କେବେ ହୁଏତ କବିଙ୍କର ମୂଳ ରଚନା-ପ୍ରତି ଆକୃଷ୍ଟ ହୋଇ ପାରନ୍ତି!

କବିଙ୍କ ସମ୍ପର୍କରେ କେବଳ ଅତିସ୍ଥୂଳ-ଭାବରେ ଏତିକି ସୂଚନା ଦିଆଯାଇପାରେ ଯେ ତାଙ୍କର ପିତୃପିତାମହ ଦିନେ ଭାରତକୁ ଆସିଥିଲେ। ବିହାର-ରାଜ୍ୟର ଅଜିମାବାଦ ବା ଏବର ପାଟନାରେ କବିଙ୍କର ଆବିର୍ଭାବ ଘଟିଥିଲା। ତାଙ୍କର ସମଗ୍ର ଜୀବନ ଭାରତରେ ଅତିବାହିତ ହୋଇଥିଲା। ଶେଷରେ ଦିଲ୍ଲୀରେ ଖ୍ରୀ ୧୭୨୦ ମସିହାରେ ସେ ମହାପଥର ଯାତ୍ରୀ ହୋଇଥିଲେ। ଏଥିପାଇଁ ତାଙ୍କର କାବ୍ୟକବିତା ତାଜିକୀଭାଷାରେ ରଚିତ ହୋଇ ମଧ୍ୟ ମୁଖ୍ୟତଃ ଭାରତୀୟ ଜୀବନ ଓ ଭାରତୀୟ ଚିନ୍ତାର ଚିରନ୍ତନ ସଂବାହକ ହୋଇ ରହିଛି ଏବଂ ସୋଭିଏତ୍ ରାଜ୍ୟ ଓ ଭାରତ ମଧ୍ୟରେ ଅମୃତମୟୀ ମୈତ୍ରୀର ସେତୁ ରଚନା କରୁଅଛି। —ତାଙ୍କର ଲେଖା ସବୁ ତାଜିକ୍ ଜନସାଧାରଣଙ୍କ ପ୍ରିୟ ସମ୍ପଦ। ଅମର ଛନ୍ଦ ଚଉପଦୀ ଭଳି ସୁବିଦଗ୍ଧ ସମାଜରେ ମଧ୍ୟ ଆଦୃତ ହୋଇଥାଏ।

—

( ମୁକ୍ତଛନ୍ଦ )

ସଂକେତ ଦିଏ ଶାହା !
ଅନାଅ, ଅନାଅ, ଲଗେଁ ଉତ୍ସବ,
ହେଜି ଉତ୍ସବ,
ସେ କି ପୁଲକର ମୃଦୁ କଂପନ
ଅତିଥି ପ୍ରାଣରେ
ଶିହରି, ଶିହରି
ସଂଚରି ଯାଏ ଅହ୍ନା ?
ସଂକେତ ଦିଏ ଶାହା !

ଶତ ବନ୍ଦୀର ବନ୍ଦନା ସ୍ୱରେ,
ଉଚ୍ଛ୍ୱାସେ କେତେ ପ୍ରୀତି !
କ୍ରୀଡ଼ା କୌତୁକେ ମତ୍ତ ଭବନେ
ଉଚ୍ଛୋଳ ଉଠେ ଉନ୍ମାଦମୟୀ ଗୀତ !

ସମାଗତ ଏବେ ସ୍ନିଗ୍ଧ ଦିବସ ଏଇ,
କେତେ ପ୍ରତୀକ୍ଷାର ମୁଗ୍ଧ ନୟନେ
ସମାଗତ ଶେଷେ କି ଜୟମାଲ୍ୟ ନେଇ;
ବିଜୟ ଦିବସ ଏଇ !
ଆଜି ସୁକୁମାରୀ କଳା, କୌମୁଦୀ
ସ୍ନିଗ୍ଧ ମଦନ ସତେ ।
କି ସ୍ୱରୁ କଳାର ଗୀତ, ବିଚିତ୍ରା,
ଝଲସାଇ ଦେବେ
ସବୁରି ନେତ୍ର ପଥେ ;

ଝଲସାଇ ଦେବେ,
ନିଗୂଢ଼ ସେ କେଉଁ ବହ୍ନି ଆଲୋକେ
ଦଗ୍ଧ ଯହିଁରେ,
ହୃଦୟ ଦିଓଟି ପଲକେ ଭୂଲୋକେ ।
ଚକିତେ ଚକିତେ,
ଦର୍ଶକ ଜନ ନୟନୁ ନୟନୁ
ରଶ୍ମି ଯାଉଛି ନଇଁ,
କାହିଁ ଅପୂର୍ବ ରଙ୍ଗ ସୁଷମା
ବିସ୍ମୟ ଉଠେ କହି !

—ଦୁଇ—

ପହିଲ ସୁରାର
ଭୃଙ୍ଗାର ତାର ଦୁଏ କ ଖାଲି,
ଏଇ ମଦନର ଆତ୍ମା କ ଯାଏ
ବିଶ୍ୱ ଭବନ୍ତୁ ଯାଏରେ ଢଳି ?

( ରାମକେରୀ )

ଯାଏ କରେ ସେଇ ଜଗତେ
ଯହିଁ ହୃଦୟ ଧାଏଁ,
ବିପାଣ୍ଡି କ ରଙ୍ଗ ସୁରତେ,
ଉଡ଼ି ବିହଗ ପ୍ରାୟେ ।
ଯହିଁ ରଚେ ପୁଣି ପ୍ରସ୍ଥାଣ
କେତେ ପ୍ରେମିକ ପ୍ରାଣ,
ପୀରତରୁ ଜାତ ପ୍ରେରଣା-
ଯୋଗେ ତାଡେଲ ଜାଣ ।

(କଳହଂସ କେଦାର )

ସଂଗୀତ ରସାଳାପେ ହୃଦୟହାରୀ
ସେ ଯାଦୁକର ତହୁଁ କୁହୁକେ ଘାରି,
ଖେଳାଇ ଦେବ କଳାକୌଶଳରାଶି
ଶ୍ରୋତୃମଣ୍ଡଳୀ ପାଶେ ଉଭା ସେ ଆସି ।

ସତେ କି ନିଷ୍କୋଷିତ ଅସି ସେ ଅବା
ଉଭା ହେ କବି ବହି ଗୌରବପ୍ରଭା ।
କି ଯୁଗ୍ମକୃତୀ ଆଢ଼େ ନିଖିଲ ଆଖି
ନିଖିଳ ଶ୍ରୁତି ଫେରି ରହେ ତ ଲକ୍ଷି ।
ଦାମ୍ଭିକ ଦର୍ପୀ ଯେତେ ଅତିଥି ଜନ
ପାଷାଣ ପ୍ରତିମାଠାରେ ଦିଶେ ଶୋଭନ ।
କାଉଁରୀ କାଠି ପରି ସରୁ ତା ଦେହ,
କି ରୂପ ! ଆକର୍ଷଇ ଉତ୍ସୁକୀ ସ୍ନେହ ।
ସେ ଭଜି ଉତ୍ସବର ସାଫଲ୍ୟ ଭାଗେ
ଉଣା ଯେ ନୁହେଁ ଢଳେ ଶୋହିଲ ଆଗେ,
ଉଚ୍ଛ୍ୱାସ ସମାରୋହେ ଶାହାର ପାଶେ
ମରଣ ସମ ମୂକ ନୀରବ ଭାଷେ ।
ସତେ କି ନିଃଶ୍ୱାସ ତା ନ ଚଳେ କାହିଁ
ରୋହିଉ ଥାଏ ଜନ ନିଃଶ୍ୱାସ ଯାଇ ।
ନ ଡୋଲି ପକ୍ଷ୍ମ ତଳେ କି ଥିର ସ୍ୱପ୍ନ
ସକଳ ପରେ ରଚେ ମୃଦୁ ଶାସନ ।

( ରାମକେରୀ )

ଅତିଥି ହଜାଇ ନିଜରେ
କାହିଁ କଳ୍ପନା ଜଳେ,
ଉତ୍କଣ୍ଠାରେ ରହେ ଅନାଇ
ଯେବେ ନିଳୟତଳେ ।

—ଗିରି—

ସୁଲଳିତ ସ୍ୱର ଲହରୀ
କେବେ ଯିବ ଉଚ୍ଛୁଳି,
ଶରୀରୁ ହୃଦୟୁ ସବୁରି
ସତେ ଯାଏ ମୁକୁଳି ।

"ନିମିଷର ପରେ ନିମିଷ
ଏ ତ ଯାଉଛି ଗଳି,
କାହିଁ ପାଇଁ ମୂକ ସ୍ମରଣ
ଧୃତ ଆତୁର ଖାଲି ।"

କି ମାୟା ପଟଳ ମେଲି ସେ
କିବା ସ୍ୱପନ ରଚେ
କେ ଜାଣି କି ମହା ପ୍ରମାଦ
ଆହା ନ ପଡ଼ୁ ପଛେ ।

କାହିଁକି ଉଦାସ, ନିର୍ଲେପ,
ସେ ତ ନୀରବେ ଟିଆ ?
ସୁରଭିତ ଥିର ଶ୍ୱାସ ତା
ଏ ଯେ ପକାଏ କିଆଁ ?

କାହିଁପାଇଁ ନାସା-ସମୀର
ଖେଳି ସହସା ଚଳେ
ଜଳିଯାଏ ସୁରମଥାନ
ଭରି ଅଙ୍ଗନ ଜଳେ ।

—ପାଞ୍ଚ—

ଆତ୍ମାର କି ଝକମକରୁ
ଝରି ସ୍ଫୁଲିଙ୍ଗ ଛୁଟେ,
ଜଳାଏ ବିଳାସ ଭବନ
ରଙ୍ଗଶାଳା କି ଫୁଟେ ।

( ଭୂପାଳ )

ଜଉରେ ଜଡ଼ିତ ଓଠ ଯୁଗଳ କି
ଖୋଲି ଦେଉଁ ଥରେ ସୁରପାବେଶେ,
ବହିଯାଏ ଜାହ୍ନୁଁ ପ୍ରବଳ ଆବେଗେ
କି ଝଡ଼ ସବୁରି ହୃଦୟପ୍ରଦେଶେ ।
ଅତିଥି ଜନର ନିରୁଦ୍ଧ ନୟନ
ଚକତେ କି ଘନ·ସ୍ତନତେ ଭରି,
ଥରି ଯାଏ ଥରେ ପ୍ରାସାଦ ଶିଖର
ଥରେ ତା ସୁତଳ ବିତଳ ପରି ।
ନୂଆ କରି ପୁଣି ଥରିଏ ଅଧର
ଗାଏ ସେ ଗୀତ କି : କି ଗୀତ ଗାଏ !
କି ଗୀତ ଗାଏ ରେ, ମରମୁଁ ମରମେ
ସ୍ୱପନ କି ସତେ କି ରୂପ ପାଏ !
ଏ ମର ମରତେ ତାହାରି ସରି କି
ବିରଚି ଗୀତ କେ, ପାରିଚି ଗାଇ,
ଗୋଟିଏ ସ୍ୱରରେ କୋଟିଏ ସ୍ୱର ଯେ
କି ରସେ କୋରସ୍ ଗୀତରେ ଥାଇ ।

—ଛଅ—

(କଳହଂସ କେଦାର)

କି ତାନ ଲୟେ ନିଜେ ସୁମନୋରମ
ସୁଷମସ୍ବରେ ବାଜେ ମୂରତ୍ତ ସମ ।
ସ୍ନାୟୁରେ ତା'ର ରାଗରାଗିଣୀ-ଖେଳା
ସ୍ବରକେ ଗୋଟି ଗୋଟି ବିଶ୍ବର ମେଳା ।

ସ୍ବରର ସେଇ ନିଜ ସଂସାର ଥରେ
ସ୍ବରର ମୂର୍ଚ୍ଛନା କି ବେଢ଼ାଇ ଧରେ ।
ତିଳେକ ସ୍ବର ଯେବେ ତା କଣ୍ଠୁ ଫୁଟେ
ସବୁରି ଚିତ୍ତ ଊର୍ଦ୍ଧ୍ବୁଁ ଊର୍ଦ୍ଧ୍ବକୁ ଉଠେ ।

(ରାମକେରୀ)

ଅଙ୍ଗୁଳି ତା' ଧୀରେ ବୁଲି ରେ
ମୃଦୁ ସାରଙ୍ଗୀ ଅଙ୍ଗେ,
ସଜାଏ ରେ ଯେବେ ସଂଗୀତ
କେତେ ସୁରତରଙ୍ଗେ ।

ମନେ ହୁଏ, ସେ ତ ସାରଙ୍ଗୀ
ନିଜେ ବାଜୁଚି ପରା,
ନିଜେ ନିଜ ରାଗ ଅଙ୍ଗୀରେ
ଜ୍ୟୋତି-ସଂଗମେ ଝରା ।

—ସାତ—

କ ରସ ରେଶମୀ ତନ୍ତୁରେ
ଯାର କଳନା ନାହିଁ
କ:ମନ୍ଥରା ସ୍ୱର-କାନ୍ତରେ
ଶ୍ରୋତା ଗୁନ୍ଥା କ ହାଇ ।
ହସ ଚଲୁଲିତ ଅଧରୁ
ରଶ୍ମି ନିଃସରି ଆସେ
ହସରେ ଅଶ୍ରୁଳ, ଅନା ରେ !
ଦ୍ରବିତ ନୟନ ଭାସେ ।
ସତେ କ ରେ କେଉଁ ଆକାଶେ,
ବାଜି ସେ ସ୍ୱନ ଥରେ ।
ପ୍ରତିସ୍ୱନ କେତେ ବହ୍ନି ରେ
ସବୁ ହୃଦୟ ପରେ ।

( ମୁକ୍ତଛନ୍ଦ )

ତନ୍ତୁ ଥିରେ ଥିରେ
ତୋଳି କ ଅଥିରେ
ତାନ୍‌ପୁରାଟିରେ
ଉଠାଏ ସ୍ୱର କ ଉଠାଏ ଖରେ ।
କ୍ରୋଧେ ଉନ୍ମାଦ, ଝଡ଼ ଗର୍ଜନେ
କେତେ ତର୍ଜନେ,

ବିଦ୍ୟୁତ୍‌ଧାର ଝରି ଝରି ଯାଏ ଧରଣୀ ପରେ
ଉଠେ ଧୃକ ଧୃକ ଅନ୍ତରେ ତା'ର
ସଙ୍ଗୀତ-ଗୀତ, କାନ୍ତ, କରୁଳ !

ପଲକେ ପଲକେ,
ଝଲକେ ଝଲକେ,
ଫଣ୍ଟେସ୍ ସମ ଜଳେ ଉତ୍ସବ
ଜଳେ ସେ ଭବନ ଜଳେ ।

—ଧରେ ଯେବେ ଧରେ
ତାନ୍‌ପୁରାଟିରେ ଧରେ !—
ଆପଣା ପ୍ରାଣର ବହ୍ନି-ଗାହନେ
ବିଶ୍ୱ ଦାହନେ
ତୀବ୍ର ତାପର୍ ଜ୍ୱାଳା,

ଭସ୍ମକ ନୋହି ରହିଚି ତହିଁରେ
ଭୁବନେ ଭୁବନେ ବହ୍ନିବୁଦ୍ଧି ମାଳା ।
ଧରେ ଯେବେ ଧିରେ
ତାନ୍‌ପୁରାଟିରେ
ଧରେ—
ଭବନ ଭରି ତ,
ଖାଲିରେ ବହ୍ନି ଜ୍ୱାଳା !!

—ନଅ—

ସିଂହାସନରୁ ସହସା ଉଠିଲା ଶାହା !
କେଉଁ ଲେଖନୀ କି ବର୍ଣ୍ଣି ପାରିବ,
ନ ଦେଖିଲା ଯାହା, ଅଶ୍ରୁ ନୟନ ବାସ୍ପସ୍ତରେ
ସିଂହାସନରୁ ସହସା ଉଠିଲା ଶାହା !
ଛିନ୍ନ କରିଲା ଗଳାରୁ ନିଜର
ରୂପେ ଝଲମଲ,
ରତ୍ନହାର ତା' ଆବେଗ ଭରେ—
ରତ୍ନହାର ତା'
ସୂକ୍ଷ୍ମ ସୁକ୍ଷ୍ମରୁ ମଣିରେ ଖଚିତ,
ଧରା ଓ ସାଗରେ ସମାନ ଯାହାର
ହୋଇନ ରଚିତ,
ମୂଲ୍ୟ ବାହାନ ସବୁରି ଲପ୍‌ସା—ଅତୀତ ଆହା !!
ନିଜର ଗଳାରୁ ରତ୍ନହାର ଯେ
ଛିନ୍ନ କରିଲା ଶାହା !
ଏକ ଅପୂର୍ବ ଦୃଶ୍ୟ ଏ, ରାଜେ— !
ଝୁଲେ ସେ ମାଲ୍ୟ ଝୁଲେ,
କବର କଣ୍ଠେ, କେସନେ ଯାଇ ରେ
ଝୁଲେ ସେ ମାଲ୍ୟ ଝୁଲେ !
ସବୁଠୁ ଶ୍ରେଷ୍ଠ ଭୂଷଣ ସେହି ଯେ
ଶାହାର ଦେହରେ ସକଳ ଭୂଷଣ ଭୁଲେ,
କି ଅନବଦ୍ୟ, ସୁଷମାସ୍ନିଗ୍ଧ, ଫୁଲେ !

—ଦଶ—

ଉଚ୍ଛ୍ୱସିତ ଏ ତାଳରେ ତ କି ଯେ ବାଜେ !
ଥରୁଚି ଭବନ, ଥରିଲା ଭୁବନ
ବାଜିଲା ତାଳରେ ତାଳ,

ଜାଣେ ନା, କାହିଁକି ସଉଧ ମଥାନ
ଛୁଇଁନ ଭୂତଳ ଖାଲ !

ଜାଣିଚି ଏତକ, ଆଉ କା ହୃଦୟ
ତେସନେ ଫୁଲକେ ପୂରେନା କାହିଁ,

କମ୍ର କାମିନୀ "କୌମୁଦୀ" ପରି
ଆଉ କେ ତେସନେ ଉଠେନା ଶିହରି
ଦୀପ୍ତ ନୟନେ ରହେନା ଚାହିଁ ।

ଅନାଇ ଥାଏ ସେ ମୁଗ୍‌ଧା ତରୁଣୀ, ଅନାଇଥାଏ
ବିହ୍ୱଳ କବିର କଣ୍ଠ ଗାଏ
—ତନ୍ତ୍ରୀ ବାଏ, ସେ ତନ୍ତ୍ରୀ ବାଏ ।

ବିଭୋଳ ଗୀତର ମୂର୍ଚ୍ଛନା ରାଜି
ମରମେ ବାଜି ତା',

କି ମହାବିପାକ ଧ୍ୱଂସ ସରଜି, ଧ୍ୱଂସେ ସାଜି ତ,
ଧାଏଁ ଲୋ ଧାଏଁ !

କି ମହା ପ୍ରଭଞ୍ଜ ଚମକ ଧାଏଁ —

( ବଙ୍ଗଳାଶ୍ରୀ )

ଥାଏ କି କାହିଁ ଲୋ, ସେଭଳି ପ୍ରତିଭା
କେବେ କାହା ଅଧିକାରେ ?
କି ବର ଆଣିଛେ ଦୁର୍ଲଭ ଧରାରେ
ମିଳିଲେ ବା ମିଳି ପାରେ ।

ଭୁଲି କେ ପାରୁଛି ବାଳାଠୁ ବଳି ଲୋ
ତା କଳ ସୁକରୁଣ୍ଲା,
ହୃଦୟର ସେତେ ନିଗୂଢ଼ କାହାଣୀ ।
ଜାଣେ ସିନା ପ୍ରେମଶୀଳା ।

ଶିହରାଇ ଦିଏ 'ମଦନ' ବାଳାକୁ
ପ୍ରେମାଙ୍କିତ ତାର ତନୁ,
ସ୍ନେହାଙ୍କିତ ତାର ଚଟୁଳ କଟାକ୍ଷେ
ପାଶୋର ନିଖିଳ ମନୁ ।

ଆପଣାକୁ ହେଲେ ପାଶୋରେ କଶୋରୀ
କି ଡୋଳା ଖେଳାଇ ଦିଏ,
ନିଟୋଳ କୁଟିଳ କପୋଳେ ଭୁରୁ ଲୋ
କି ଭଙ୍ଗେ ଲୋଲାଇ ନିଏ ।

ପୀରତି ଅମଳୀ          ଆତୁର ରେଗୀ ଲୋ
ଯେସନେ ଗାରେଡ଼ି ରଚେ
ପୀରତି-ଅତୁଳା          ଗୀତରେ ରୁପସୀ
କି ଲୀଳା ଆଲେଡ଼ି ଖଚେ !

ସତେ କି ନିଜର          ସତ୍ତ୍ୱକୁ ଚିପୁଡ଼ି
ଆକୁଳେ ଅରପି ଢାଳେ,
ପୀରତି ଅନଳେ          ଇନ୍ଧନ ଧନୀ ଗୋ
ଯୋଗାଇ ଅଧୀରେ ଜାଳେ ।

ପ୍ରତିଭାରେ ଦେବେ          ପ୍ରତିଭା ଭେଟେ ଲୋ
ଏସନ ମହିମାମୟୀ,
ବେଳକାଳେ ସିନା          ଏକର ଆହ୍ୱାନେ
ଆରେକ ଉତ୍ତର ରହି ।

ଭସାଇ ନେଉଚି          ଯୋଷାକୁ କାହିଁ ଯେ
ଜବର ତରଳ ଗୀତ,
ଉଲ୍ଲୁସାଇ ତାକୁ          ଡେଜାଏ ବୋଲି ତ
ତାହାର ସୁରତି ଥିତି ।

ଜଳୁଥାଏଁ ହିଁ          ପ୍ରାଣର ଆବେଗ
ଦୋଳି ଦୋଳି ଦଶେ ଦଶେ,
ପ୍ରଣୟ ଦହୁଡ଼ି          ପ୍ରଣୟ ଶିଖା ଲୋ
ପ୍ରସରି ପ୍ରସରି ମିଶେ ।

—ତେର—

ଫୁଲଣା ରସର          ଆବେଗେ ଫୁଳେ ଯେ
କେସନେ ତରୁଣୀ ମନ,
ଅହେତୁରେ ସତେ          ଝୁଳ ଝୁଳ ଥରେ
ପୃଥୁଳ ଉଦ୍ରେକ ଧନ ।

ମଥା ନୋଇଁ ଧୀରେ          ରସ ଆବେଶର
ସ୍ୱକୁନ୍ତର ଛନ୍ଦ ଢଳେ,
ଯେଉଁ ଅତଥିରେ          ଅରପି ଦେଲ ସେ
ଆପଣାକୁ ଆପେ ବଳେ ।

ତାର ସମ ଖସି          ଶାୟ୍ୟକୁ ସତେ କି
ତାହାରି ସମ୍ମୁଖେ ଛୁଟେ,
ବିହ୍ୱଳା ତନୁ ତା'          ବିଦ୍ୟୁଲ୍ଲତିକା କି
ଆଲୋଳି ହିଲ୍ଲୋଳି ଉଠେ;

ନୟନ ମୁଗ୍ଧାଏ          ସୁଷମା ଶିଖୀ ତା
ମଜାଏ ବିଜୁଳି ଝଳି,
ହୃଦୟରୁ ହୃଦେ          ଜିଣି କି ମୁଦେ ଲେ
ଝଳସି ଯାଉଛି ଚଳି ।

—ଚଉଦ—

( ସମକେଶୀ )

କୁସୁମିତ ତନୁତଟରେ
ତୃଷା-ବାସନା-ରେଳି,
କି ବଙ୍କ କୃପାଣ-ଠାଣିରେ
ସେ ତ ଯାଉଚି ଖେଳି ।

ସଚେତ ନ ହୋଇ ଅନ୍ତଥି
ଥରେ ନ ପାରୁ ଜ ଣି,
ଏକା ଅସି ସ୍ନେଟେ ସବୁରି
ଶିର ଯାଏ କି ହାଣି ?

ପିଠି ପିଠି ପଡ଼େ ଦୁକୂଳ
ଲୁଠି ବଲଗ ଘଟେ,
ନୟନରେ ନୁହେଁ, ଯାଏ କି
ଲୁଟି ମରମ-ପଥେ ।

ଥିଲେ ଥିବ ଅବା ସରଗେ
ଫୁଲ ଧରାରେ କାହିଁ,
ସେ ସୁଖର ରସ-ସୁଷମା
ବାଳା ବାଡରେ ଯାଇ ?

—ସନ୍ଦର—

କି ରସ-ଆବେଶ-ମୁଦର
ତାର ନୟନ ତଳେ,
କି ମଦାଳ୍ପ ଯାଚେ ଅଧୀର
ପ୍ରଗଳ୍ଭ ଭରି ଛଳେ ।

ରୁଚିର ଚପଳ ଭ୍ରୁରୁ ତା'
ନଇଁ ସୁରସେ ଉଠେ,
ହିମ ଦ୍ରୁଏ ଥରେ ଶୋଣିତ,
ପୁଣି ଉଷ୍ମି ଫୁଟେ ।

ହସଗୋଲା ତେଜ ଅଧରେ
ଉଷା ଲଜେଇ ଯାଏ,
ମୁହଁ ପୋତ ବର୍ଣ୍ଣ ବିଳାସ
କାହିଁ ଶୋଣିମା ପାଏ ।

ସରଳର ସରି ସଳିଳେ
ଯେବେ ଚରଣ ଗୁଳି,
ଅଥଯ୍ଯା ସେ ଥୟଳ୍ପସ୍ୟରେ
ଯାଏ ନୟନ ଢାଳି;

—ଷୋହଳ—

ଯାଏ, ନାଚି ଯାଏ ନୀଡ଼ି କି
କେଉଁ ବନାନୀଡରେ,
ଝଲମଲ ସୌର କିରଣେ
ନୀଳ ତଟିନୀ-ନୀରେ ।

ଆକାଶରେ ଗ୍ରହ ତାରକା
ଖରେ ଯ ଏ କି ଘୁରି,
ଘୁରି ଯାଏ ଯେବେ ତରୁଣୀ
ଘୁରେ ପ୍ରାସାଦ ପୁରୀ ।

ବହ୍ନି ଅବିଶ୍ୱାସ ମନରେ
ସିଏ ତରଳ ସ୍ନେହେ,
କି ତାରା-ଘୂର୍ଣ୍ଣନ ଖେଳାରେ
ହୃଦେ ତରସ ପାଏ ।

ଥରେ ଥରେ ଭ୍ରାନ୍ତ ଲୟରେ
କେବେ ପଡ଼ୁଚି ଭୁଲ,
ତନୁର ତା' ଲୀଳା ଲେଖିବ
କା'ର ନୟନ-ତୁଳୀ ।

ଥର ଥର ଦୀପ ଶିଖା ଗୋ
ତ.ର ତନମା ଝୁଲେ,
ସତେ ହୃଦ ପ୍ରିତି ସରିତେ
ତେଜୋରଶ୍ମିରୁ ଝରେ ।

— ସତର —

ଅନୁସରି ତାକୁ ସଧୀରେ
ରଶ୍ମି ପାଖୁଡ଼ା ଉଡ଼େ,
ପ୍ରଜାପତିପୁଞ୍ଜ ଉଡ଼ି କି
ବର୍ଣ୍ଣ ବିଳାସେ ହୁଡ଼େ ।
କି ଚିତ୍ର ବିଚିତ୍ର ଭଙ୍ଗୀରେ
ପ୍ରତି ଅତିଥି ପାଶେ,
କି ନୃତ୍ୟ ବିହ୍ୱେ ରେ ତରୁଣୀ
ପ୍ରୀତି-ଅରୁଣ-ହାସେ ।

ଜଣ ଜଣ କରି ଅତିଥି-
ଜନ ପାଶକୁ ଯାଏ,
କି ରସ ରଙ୍ଗିମ ରଗରେ
ଭ୍ରୂ-ବଲ୍ଲୀ ଖେଳାଏ ।
ବାଳାର ସେ ଚଳ ଗୁହାଣୀ
ହାସ ଉର୍ମିର ମେଳା,
ଆଉଁସି ଆଶ୍ଳେଷେ ଭିଡ଼େ କି
ପ୍ରତି ନୟନ ବେଳା ।
ବେଳେ ବେଳେ କର ପ୍ରସାରି
ବାଲ୍ୟ ଚମକି ଯାଏ,
ହାତ ନୁହେଁ କାହା ହାର ଗୋ
ତାର ଗଳା କିନାଏ ।

—ଅଠର—

ପାଳି କରି କରପଲ୍ଲବ
ପ୍ରତି ପାଶେ ଦୋଳାଏ,
ପ୍ରୀତିରଞ୍ଜ ବର ରେଣୁ ଗୋ
ଲୁଣ୍ଠି ଲୁଣ୍ଠି ପଳାଏ ।

ଯେତେ ପୂଜନୀୟ ଅତିଥି
ଯେତେ ସୁଜନ କୁଳ,
ବାଳାର ମାଧୁର୍ଯ୍ୟ ଲାବଣ୍ୟେ
ଜଳି ଭସ୍ମର ତୁଲ ।

ସେ ଭସ୍ମ ରାଶିରେ ଉଚ୍ଛୋଳି
ଯେବେ ଚତୁର୍ଦ୍ଦୀ ଚଳେ,
ସତେ ସୁଷମାର ମଶାଲ
ରୂପ-ରସରେ ଝଲେ ।

(କଳହଂସ କେଦାର)

ତେଣେ "ମଦନ" ମନ୍ତ୍ର-ମୋହିତ ସମ,
ନିରେଖେ ନିରଧାରେ ରୂପ ସୁରମ୍ୟ ।
ତା ଲାସ୍ୟ-ଲୋଲ-ରସେ ଲାଲସୀ ଅତି,
ଭାଳେ ପରାଣ ବହ୍ନି ପ୍ରୀତି ଆରତି ।
—"କେମନେ ଜଣାଇବି, ହୃଦ-ଆକୂତି,
କି ଉପହାରେ ଗୋଳି ସ୍ନେହ-ଆପ୍ଲୁତି ।"

—ଊଣେଇଶ—

ସକଳ ଆଗେ 'ଶାହା' ପ୍ରଦତ୍ତ ହାର,
ମହା ଅମୂଲ୍ୟ ପୁରସ୍କାରରେ ସାର,
ନବୃଇ କରେ ଥରେ, ଧୀରେ ସମ୍ଭ୍ରମି,
ନର୍ତ୍ତକୀ କମନୀୟ ପଦେ ଆନମି,
ଆବେଗେ ଫିଙ୍ଗେ ତାର ଗୁରୁ ଚରଣେ,
ବହ୍ୱଳ ଅନୁରାଗେ, ପ୍ରୀତ ବରଣେ—!
ଚେତା କି ଅଛି ଦୁଃଖ କଷଣ ସତେ,
ହକାରି ଆଣେ ନିଜେ ଜୀବନ ପଥେ !
ଅଣେଇ ତଳେ ନୋଇଁ ତା ଆଡ଼େ ମଥା,
ଉଚ୍ଛ୍ୱସି ଫେଡ଼ି ଦିଏ ମରମ କଥା ।

—"ପଯ୍ୟର ଲଖି ମୋର, ଏ ପୁରସ୍କୃତ
ଦାମ୍ଭିକ ଜନୋଚିତ ଅକୃତ କୃତ ।
ତୋ ପଦ ନୂପୁରର ନିକ୍କଣେ ତଳ,
ଉତ୍କଳୁଁ ଉଜ୍ଜ୍ୱଳ ତ ପ୍ରକଟୁଁ ଝଳ ।
ଲହନ୍ତା ବହି ଯଦି ମୋ ଭଲଦେଶେ,
ଦିଅନ୍ତି ମୁରୁଛି ତ ଏ ପ୍ରାଣ ଶେଷେ ।
ଆଶଙ୍କା ଆସେ ମନେ ହେ ଚଳଭୂରୁ !
ଏ ମହା ଗଉରବ, ଏ କେଡ଼େ ଗୁରୁ ହେ !

—କୋଡ଼ିଏ—

( ମୁକ୍ତଛନ୍ଦ )

ଶୁଣି ଏ ବଚନ,
ଅରୁଣ ଲୋଚନ,
ବିସ୍ମୟେ ଶାହା ହୁଏ,
ସମ୍ମୁଖେ ତାର,
ଧରି ଅମ୍ବରେ
ଘନ ଅନ୍ଧାର ନୁଏଁ ।

ସୁଭୀଷଣ ତାର କପାଳ ଆବୋରେ
କଜ୍ଜ୍ୱଳ ମେଘ-ଛାୟା
ଭ୍ରୁକୁଟୀ କୁଟିଳ ଭଙ୍ଗୀରେ ତାର
ବିକୃତ ମୁଖ-ମାୟା
ଆପଣାର କୋପ ଉତ୍କ୍ଷେପେ ଆପେ
କଂପିତ ନିଜ କାୟା ।
ନାହିଁ ଆରେ ନାହିଁ
ବିଶ୍ୱ ଭୁବନେ ନାହିଁ କିଛି ନାହିଁ,
ଶାନ୍ତ କରିବ, ଧୀରେ ଶୀତଳାଇ
ରୁଦ୍ର ହୃଦୟ, ଆହା ।
କି ହେଲା, କି ହେଲା,
ମନ୍ଥିତ ହେଲା ।
ବ୍ୟର୍ଥ କି ସତେ ରାଜା'ର ଗର୍ବଗିରି

—ଏକୋଇଶ—

ବନ୍ଧ ହୁଏ ସେ ଉତ୍ସବ ଗେଲ
ନୃତ୍ୟ ଆମୋଦେ ମତ୍ତର ଗୋଲ,
ନବାଙ୍କ ହୁଏ ଭଜି ।।

ରାଜାର ଭୂଷଣ, ରାଜାର ଶାସନ
ଇଙ୍ଗିତେ ଉଠେ ବାଜି ।
"ଜୀବନ-କୂଳର କୁତ୍ସିତ ଦଳେ
ଘୃଣ୍ୟତମ ଯେ ଜାଣ ।

କେସନେ ପଶିଲା ସବୁଠୁ ଉଦାର,
ସବୁଠୁ ସଦୟ,
ଏଇ ମୋ ପ୍ରାସାଦ ପୁରେ,
ଲାଂଛିତ ଯେଉଁ ମର୍ଯ୍ୟାଦା ମୋର
ଲାଂଛିତ ଅଭିମାନ
ଘୂରେ ଏ ଗଗନେ ଘୂରେ
ଫେରିବ ତେବେ ସେ
ଖଡ୍‌ଗ ଘୃଷିଲେ ଶୟତାନ ଶିରେ
ରକ୍ତେ କରି ତା ସ୍ନାନ ।
ଫାଶିର ମଞ୍ଚେ ମସ୍ତକ ତାର
ଗଡିବା ଧାର୍ଯ୍ୟ ନ୍ୟାୟ !
ସଙ୍ଗୀତ ସମ ସ୍ୱଚ୍ଛ କି କାହିଁ
ଚିନ୍ତାରେ ତାର ହାୟ !

—ବାଇଶ—

ଆମେରେ କୃପାଳୁ, ଆମେରେ ବଞ୍ଚକଜନ !
ଅନ୍ତର କର, ସତ୍ୱର ଏଇ ଦୁର୍ଜ୍ଜନ ଖଳେ
ଚକ୍ଷୁ ପୂରବୁଁ ହେ ମୋର ଭୃତ୍ୟଗଣ !

ନଗରୀର ଦ୍ୱାର-ତୋରଣ ସମୀପେ
ବେତ୍ରାଘାତରେ ଯେଉଁ,
ଚିରଦିନ ଲାଗି ରାଜ୍ୟୁଁ ଆମର
ନିର୍ବାସନର ଶାସ୍ତି ଦିଅ ଏରେ ଦେଖି.

ନିର୍ବାସିତ ସେ ଡେରି ଡେରି କରି
ଥମି ଥମି ଗଲେ ତଳେ
ପ୍ରଖର ବେଗରେ ଚଲାଅ ନାହିଁରେ
ଚଲାଅ ତାହାକୁ ଧୀରେ
ଅନାଏ ଯେବେ ସେ ପାର୍ଶ୍ୱକୁ ତାର ଫେରି
ମୃତ୍ତିକା ପରେ ତା ପାଦ ତଳରେ
ଲୋଟାଅ ତାହାରି ଶିରେ ।

ଯେ ଜନ ହେଉ ସେ
ଯଦି କେ ଦେଖାଏ ସହାନୁଭୂତି ଏ
ବିଶ୍ୱାସଘାତୀଠିରେ
ପ୍ରସ୍ତୁତ ଥାଉ ଦେଖିବା ପାଇଁ ସେ
ନିଜର ଭଗ୍ନ ଶିରେ ।

—ଡେଇଣ—

‘‘ଜାଣ ନିର୍ଭରେ ଜାଣ
ଅବଧାର୍ଯ୍ୟ ଏ ବଚନ ଆମର,
ଅନିବାର୍ଯ୍ୟ ଏ କାମ ।।’’

( ବଙ୍ଗଳା ଶ୍ରୀ )

ଏ କାମ ବଚନ ବିଚାର କରି କେ
ବାଛିବ ଅନ୍ୟାୟ ନ୍ୟାୟ,
ଉଡ଼ି ଉଡ଼ି ଗଲା ସାହସ ଶକତି
ସଭିଏଁ ପିଛୁଳା ପ୍ରାୟ ।
ସବୁରି ମୁଖ ତ ମଳିନ ମୂକ ରେ
ଲୋଡ଼େ ପଳାୟନ ରାହା,
କାହିଁ କାହିଁ ଦ୍ୱାର ହାମୁଡ଼ି ପଡ଼ି ସେ
କେମନେ ଚଳିବେ ଆହା ।

( କଳହଂସକେଦାର )

ତେଣେ ବିଶ୍ୱାସୀ ରକ୍ଷୀ ବାହିନୀ କାହୁଁ
ଆସିଲେ ଛୁଟି ନେଇ ପଲକ ପାଇଁ ।
ଯା ଗତି ପ୍ରତିରୋଧି ପାରନ୍ତି ଦସ୍ୟୁ
ଯା ପାଦ-ଧ୍ୱନି ନିତି ଅତି ନିର୍ଭୟା ।
ରୁଧିର ପାୟୀ ଉଗ୍ର ଶ୍ୱାନ ସେ ରକ୍ଷୀ
ଅନାଇ ଲମ୍ଫ ଦେଲେ ମଦନେ ଲକ୍ଷି ।

ନର୍ଦ୍ଦ୍ୟ କରେ ଧରି କଲେ ଦଳନ
ପ୍ରମାଣି ନିଜ ରାଜ-ବିଶ୍ବାସ-ପଣ ।
ଛିନ୍ନ କରିଲେ ମଥି ବାସ ଭୂଷଣ
ଦେଖାଇ ଆରମ୍ଭିଲେ ହିଂସ୍ରା, ଦୂଷଣ ।

କ ବେଗେ ଗଡ଼ାଇରେ ତାକୁ ଭୂତଳେ
ଓଲଟ ମୁହାଁ କରି ଧୂଳି ଗହଳେ ।

ଦାରୁଣ ଦୁର୍ଯୋଗ ତା କପାଳ କୋଡ଼େ
ଯଶସ୍ବୀ କବି ନିଜ ମରଣ ଲୋଡ଼େ ।

ନିର୍ମଳ ଯଶ ଯାର ସୁଦୂରେ ଖେଳେ
ମରଣ ସିନା ତାର ସଖାଏ ବେଳେ ।

( ରାମକେଳୀ )

ଏସନ ରାଜନ ନିଗ୍ରହ
ଲଭି ଲୋଟେ ରେ କବି,
ଓଲଟି ସମ୍ମାନ ଚଷକ
ତଳେ ଯାଏ ରେ ସ୍ରବି ।

ଉଲ୍ଲାସର ଲୀଳା ଭବନ
ଭବେ ଭଂଗୁର ଯାହା,
ସ୍ବେଚ୍ଛାଚାରୀ ଶାହା ଆଘାତେ
ଅନା, ବିଭଙ୍ଗ ଆହା ।

—ପଚିଶ—

ଯଶର ଯେ ଜୟ ଡିଣ୍ଡିମ
ବଶ୍ୱ ଦାଣ୍ଡେ ମୁଖର,
କି ଆତ୍ମଗ୍ରାସିନୀ ଲଜ୍ଜାର
ଗେଲେ ଭୁନ ମୁକୁର ।
ଦୂରୁଁ ଦୂରେ ଅପସରି ରେ
ତ୍ରସତେ ମଦନ ଯାଏ,
ଫେରି ଫେରି ନେତ୍ର ପିଛୁଳି
ପ୍ରାଣ ପ୍ରତମେ ଗୃହେଁ ।
ଯହିଁ ଭେଟିଥିଲା ପ୍ରିୟାରେ
ପ୍ରୀତମଦର ଆଖି,
ଫେରି ଫେରି ତହିଁ ଉଷତେ
ସତେ ଯାଏ କି ଲଖି ।

ପଥଚଲା କ୍ଲାନ୍ତ ଚରଣ
ଯେତେ କଣ୍ଟକ ପୀଡେ,
କି ତୀବ୍ର ଜ୍ୱାଲାର କଷଣେ
ସେତେ ହୃଦୟ ଛିଡେ ।
କାହୁଁ ସେ ପାଇଲା ଶକତି
ତେଜି ଯୋଷାରେ ଚଳେ,
କାହିଁ ଥିଲା ଶୂର ହୃଦୟ
ଗଳି ଯାଉଚି ବଳେ ।

ଆହା, ଆଉଥରେ ତା' ସହ
ଡଳେ ମିଶନ୍ତା ଯାଇ,
ସ୍ୱୈରସ୍ୱର ଖଡ୍‌ଗେ ସରନ୍ତା
ବାଲା ପଦ୍ମରେ ଥାଇ ।
ଯେତେ ଯାହା ଭାଳୁ ଏସନ
ଜୀବରଶ୍ମି ତ ଯାଏ,
ବାହୁଡେ ବା ସଚ୍ଛେ ନୟନ
ପାଦ ଆଗଲୁ ଧାଏଁ ।
ରୁଧିର ଗୋଳା ତା ପଦ୍ମର
ଦଣି ନ ଦଣେ ଆଉ,
ପଦ୍ମର ତ ନୁହେଁ ଖାଲି ତା'
କ୍ଷତ ଯାତନା ଦାଉ ।

କ ଗୁଳ୍ମ ଗହଳେ ନଦୂରେ
ଦେହ ଯାଉଚି ଚିରି,
କଣ୍ଟାରେ ଗଳା କ ଘୃତ ତା'
ଖାଲି ରକ୍ତ ଶିରି ।

ତହ ତହ ବାଲି ବସାରେ
କାହିଁ ତଳପା କାହିଁ ?
ତଳପାରେ ଏ କ ଫୋଟକା
ପ୍ରୀତ ଶୀତଳ ଘୁଇ ।

—ସତେଇଶ—

ବେଳୁଁ ବେଳ ଦୁଃଖ ଅସର
ଆଉ ନାହିଁରେ ବଳ,
ଚାଲୁ ଚାଲୁ ମଝି ପଥରେ
ଥମି ଥମି ଅଚଳ ।

ଗୁଦା ବଣ କଣ୍ଟାକୋଳି ଯେ
ଆହା, ଆହାରେ ଗଣା,
ତୃଷାରେ ଯେ ଉଷା ପ୍ରଦୋଷେ
ଯାହା ଶିଶିର-କଣା ।

ଝୁଲି ଝୁଲି ପଡ଼େ ଶ୍ରାନ୍ତରେ
ଖଂଜଚରଣ ତାର,
ଦିନୁ ଦିନ ଦିଶେ ଉପସ୍ଥିତ
ଆଶା ସମୀପ ଧାର ।

ଦିନୁଁ ଦିନ କେଉଁ ଲକ୍ଷ୍ୟର
ପାଖେ ଆଗେଇ ଯାଏ,
ଯେତେ ଭାଙ୍ଗି ପଡ଼େ କ୍ଳାନ୍ତରେ
ସେତେ ଜୀବନ ଧାଁଏ ।

କ୍ଷୀଣୁଁ କ୍ଷୀଣତର ଶରୀର
ଦୀର୍ଘ ଉପାସେ ଝଡ଼ି,
ହାଡ଼ ଚର୍ମ ଚିର୍ଣ୍ଣ ବସନ
ଝାଳେ ଯାଉଚି ଭିଡ଼ି ।

—ଅଠେଇଶ—

ପବନ ଖର୍ଜ୍ଜୁର ତରୁର
ତଳ ନ ହେବା ଯାଏ,
ଓଠାରି କଙ୍କାଳ ନଜର
ନଜେ ଆଙ୍ଗୁଳେ ଧାଏଁ ।

କାଳାକାଳ ଦେଶ ବସୋର
କେଉଁ ଚେତନା-କୂଳେ,
କ'ବ୍ୟଥାରେ ନୂଆଁ ମରମ
ଲୁପେ ତାହାରି ମୂଳେ ।

( ବଙ୍ଗଳାଶ୍ରୀ )

ଖର୍ଜ୍ଜୁର ବୀଥିର          ଘନ ଛାଇ ତଳେ
ଛାଇ ଠାରୁ କ୍ଷୀଣ ହୋଇ,
ଦାନ୍ ଗଡ଼ିଯାଏ          ଦେହ ଗଡୁଥାଏ
ଲୁହ ଝଡ଼େ ବୁକୁ ଧୋଇ ।

ଦାଅଁ ଦେବତାରେ          ଆତୁର ମିନତି
ଝୁରୁଥାଏ ତରୁ ତଳେ,
"ଏଡ଼ିକ ନଦୟା          ନୟୁତ ତୁହି ଲୋ"
ଅଭିଯୋଗ ଅବିରଳେ ।

—ଅଣତିରିଶ—

ଯୋରି ଯୋରି କନା    ଢୋରି ସେ ଚିରେ ଲୋ
ଚିର ପୋଷାକରୁ ରହି,
"ମରମର ଆଶା        ପୂରଅ" ବୋଲି ଗୋ
ତରୁକୁ ଜଳପେ କହି ।

ମରୁ ରାଇଜରେ        ପ୍ରେତ ପିଶାଚ ଲୋ
ଯେ ମର ମଣିଷେ ଜଣା,
ସତେ ମଦନର        ଦେହରେ ପଶି ରେ
କଦନେ କରିଲେ ବଣା ।

ଘଡ଼ିକୁ ଘଡ଼ି ଯେ        ଉଡ଼ିଲା ଚେତନା
ମୂରୁଛି ପଡ଼ୁଛି ତଳେ,
ମନର ଗହନେ        ବୁଲୁଚି କାହିଁରେ
ଏଣେ ତେଣେ କୁତୁହଳେ ।

ଗଁଅ ଗଁଅ ଗଅ        ପାଗଳ ସ୍ୱର କି
ଡାକ ଛୁଟେ ଅହରହ,
"କୌମୁଦୀ କୌମୁଦୀ        ପ୍ରାଣ ମିତଣୀ ଲୋ
ପ୍ରିୟା ମୋର ରହ ରହ ।"

ଦନେ ହେଲେ ସହି        ହାରୁଡ଼ି ଯିବ ଲୋ
ବାହୁଡ଼ିବ ତୋର ପାଶେ.
"ନାଇଁ, ନାଇଁ, ଏଇ !        ଆସିଲି ସହି ଲୋ
ଅନା ତୋ ଅତୁଳ ହାସେ ।"

—ତରିଶ—

ଅନା, ଅନା, ସହି      ତୋ ପାଶେ ମୁଁଇ ଲୋ
ବାହୁଡ଼ି ଆସିଛି ପର୍ବ,
ନୂଆ ନୂଆ ସୁରେ      ଅନଳ ଖେଳା ଲୋ
ନୂଆ ନୂଆ ନାଚ ଢଙ୍ଗ ।

ଉହୁ ଉହୁ ଆହା      ଶବଦ ଖାଲି ଲୋ
ଦୁହୁ ଦୁହୁ ଛାତି-ଖୋଲେ,
ଲୁହ ଢେଳେ କେତେ-କ.ମନା କୋହ ଲୋ
ବୁଡ଼ି ବୁଡ଼ି ଯାଏ ଭେଳେ ।

ନଗ୍ରଶ:ର ଛାଇ      ଅସୀମ କେଡ଼େ ରେ
ମୋଡ଼ି ମାଡ଼ି ହାତ ତାର,
ସୁଁଉ ସୁଁଉ ସୁଁଉ      ମରୁ-ସମୀରେ ଲୋ
ଲୁହିଲ୍ଲ ଏକାକାର ।

ଲୁହ ଲଲେ ଲୋଟଠ      ଶବଦ ଟିକେ ଲୋ
"ଶୁଣରେ ମିତଣି ! ଶୁଣ !"
ତୋ ତହୁଁ ଆଜ କେ      ସୁକୁମାରୀ ସତୀ
କାହିଁ ପାଇଁ ଅବଗୁଣ ?"

ତେଜିଲୁ କି ସତେ      ଯୋଷା ତୁ ମତେ ଲୋ
ଯାଅନା, ଯାଅନା, ତେଜି !
ତର ତର କଆଁ      ଦେଖି କି ଦେଖିନୁ
ତତେ ତ ସରିଲି ହେଜି !

— ଏକତ୍ରିଶ —

ଏ ମରୁ-ଶିଳାରେ   ବାଜି ତୋ ପାଦ ଲୋ
ରୁଧିର ଗଳିଲେ ରହି,
ସହି କି ପାରିବ   ଜବା-ଅଧରୀ ଲୋ
ଦେହରେ ଏ ଜୀବ ବହି ।

ଖଜୁରି ଗଛର   ପତର ଗହଳେ
ସୁରୁ ସୁରୁ ବହେ ବାଆ
ଦେହ ଗୋଟିକ ତା'   କି ଦୁଃଖେ ଘାଁଉଣ୍ଡ
ଥଣ୍ଡ ପତରର ଗ୍ରହା ।

ଥାଇ ଥାଇ ଯେବେ   ବାଲି ହରିଣ ଲୋ
କାହୁଁ ଆସି କେଣେ ଛୁଟେ,
''କି ଡରେ ପଳାଉ   କୌମୁଦୀ କାଇଁଲୋ''
'ମଦନ'ର ସ୍ୱର ଉଠେ ।

ଅଭାଗ କବି ସେ   ଚେତନା ହରାଇ
ଯାତନାରେ ଝୁରି ସଢ଼େ,
ବାତୁଳର ପରି   ବାଉଳି ହୋଇ ଲୋ
ଏ କରୁ ସେ କରୁ ଗଡ଼େ ।

ବେଳେ ବେଳେ ପୁଣି   ଚେତା କି ଫେରେ ଲୋ
ଆପଣାକୁ ଡ଼ାକେ ଠାରି.
'ହେଇ ଆଗ ପରି   ନାଚେ ଲୋ କୌମୁଦୀ'
ଆଜି କି ନ ପାରୁ ବରି ?

—ବଡଶ—

ବାଉଳା ହୋଇ ତ ବାହୁନେ 'ମଦନ'
ଭାଜି ଭାଜି ପଡ଼େ ସ୍ୱର,
ପିଠି ପିଠି କଥା ଅଧକେ ରହେ ଲୋ
ଅଧେ ଗୀତ ଥରଥର ।
ସ୍ୱରଭଙ୍ଗେ ପୁଣି ପ୍ରଳାପ ଭିତରେ
କି ହୃଦ-ବିଦାରି ବାଣୀ,
"ଜାଣେ ମୁଁ ଜାଣେ ଲୋ ଦୂରେ ଥାଉ ପଛେ
ପାଶେ ଅଛୁ ପ୍ରାଣ-ରାଣୀ ।
ପଣତ ଉହାଡେ କେତେ ଉଷୁମ ଲୋ
ମୋ ଲାଗି ରହିଛି ସତେ,
କହ ଲୋ କିଶୋରି କଉମୁଦୀ ମୋର
କାହିଁକି ନଠୁରି ମତେ ।
କାହିଁ ପାଇଁ ଗୁଲୁ ପଛେ ତୁ ରହିଲେ
କି ଶେଷ ଗୃହାଣୀତ୍ୱ "
କହୁ କହୁ ବ୍ୟଥା କୁହୁଳେ, ମଥା ଲୋ
ବଦଳାଏ ସ୍ୱରଲୟ ।

( ରାମକେରି )

"ରସିକଜା ତୁ କି ନାଗରୀ
ନୋହୁ ମିତଣୀ ତଳେ,
ଲୁଟି ଛୁପି ସାପ ସରି ଲୋ
ପଶୁ ହୃଦୟ ବଳେ ?

—ତେତିଶ—

କଳା କଉଶଳ ଛଳରେ
କେତେ ବିନାଶ ଆଣି,
ମୋ ରକତେ ତୋର ତୃଷା କି
ଆଜି ତୋଷିବୁ ଗଣି !
ରୁଧିର ପାଇଁ ମୋ ଅଧୀର
ଯଦି କହୁ ଲୋ ଥରେ,
ଅଭିଶାପ ପଡୁ କାଳକୁ
ମୋର ପ୍ରଣୟ ପରେ ।”
ଏସନ ସ୍ୱୀକାରି ପ୍ରୀତକ
ଥରେ ଥରେ ବରଜେ
ବିସ୍ମର ବିଲେପେ ଯୁବା ଯେ
ବାହୁଲତା ଅରଜେ ।
ଅଶନ ଶୟନ ପାଶୋରେ
ଦିନ ଗତ ଅସର,
ଜୀବନ ସାର କି କରୁଣେ
ତୋଳେ 'କୌମୁଦୀ' ସ୍ୱର ।
( ବଙ୍ଗଳାଶ୍ରୀ )
ମରୁବୁକେ ତହୁଁ ପ୍ରକଟି ଯାଏ ରେ
ଅଲୌକିକ କଥାମାନ,
ଉଡ଼ି ଉଡ଼ି ଖେଳେ ଜୀବଧାତ୍ରୀ ଯେତେ
ଭୁଲି କରେ କଳତାନ ।

—ଚଉତରିଶ—

ଘନ ଘନ ଶୁଣି          ସେ ନାମ କାନେ ରେ
ଯେ ନାମ ସେ ନିତ ରଟେ,
ବିହାୟସ-ଗୃହୀ          ବିହଗ ଧରେ ଲୋ
ଅଭ୍ୟାସରେ ହୃଦ ପଟେ ।

ସୁଲଳିତ ତାର          କି ସ୍ୱଚ୍ଛ ଗଗିଣୀ
ସୁକୁମାରେ ପଡେ ଝରି,
ବିହଙ୍ଗମ ମନ          ଶ୍ରବଣ ତୋଷି ଲୋ
କରୁଣ ଆଳାପେ ଥରି ।

କାନ ଡେରି କେଉଁ          କଜଳ ପାତି ଲୋ
ଶୁଣି ବୁଲେ ତାର ଗୀତ,
ବିହଗ ଗୀତରେ          ମତ ବଦଳାଇ
ଆନ ଦ୍ୱିଜ ଗାଏ ନିତ ।

ସମସ୍ୱର ସତେ          ଅପୂର୍ବ ସ୍ୱନ ଗୋ
ପ୍ରତି ଦ୍ୱିଜ କଣ୍ଠୁ ଝରେ,
କୌମୁଦୀ କୌମୁଦୀ          କୋହର କଥା ଲୋ
ଆକାଶୁଁ ଆକାଶେ ଖରେ ।

ପ୍ରତି କଣ୍ଠ ତଟେ          କି ଐକ୍ୟ ବିତାନେ
କୌମୁଦୀ କୌମୁଦୀ ଡାକ,
'କାମଦୀ' ବୋଲି ତ          ବିହଗ ଭାଷେ ଲୋ
ଛୋଟ ଶବ୍ଦେ ପରିପାକ ।

—ପଇଁତିରିଶ—

( ରାମକେରୀ )

ଘୁହୁଁ ଘୁହୁଁ କାହୁଁ ବରଷେ
ପ୍ରାୟ ଅତୀତ ହୁଏ,
ପୁଣି ଋତୁରାଜ ବସନ୍ତ
ଆସି ଧରାରେ ଛୁଏଁ ।
ବସନ୍ତ ଆଗମ ଯାଏ ସେ
ଦୁଃଖ ଯାତନା ସହି,
ପବନ ଖର୍ଜ୍ଜୁର ମୂଳରେ
ଥାଏ କଷଣେ ରହି ।

( ବଙ୍ଗଳାଶ୍ରୀ )

ପଲକ ନ ପଡେ        ନୟନେ ଆଉ ଲୋ
ଅନ୍ନ ଜଳ ଛୁଏଁ ନାହିଁ,
ଅଙ୍ଗର ଶୋକେ ତ        ଙ୍ଗୁର ନିଶ୍ୱାସେ ଲୋ
ଜୁଳୁ ଜୁଳୁ ଥାଏ ଘୁହିଁ ।

ବେଳୁଁ ବେଳ ତାର        ଅସ୍ଫୁଟ କଥା ଲୋ
ଅବୁଝା, କି ହୁଏ ବାରି ?
ଜୀବନ ଦୀପର        ଉଜଳ ଶିଖା ଲୋ
କମି କମି ଆସେ ଖାଲି ।

—ଛତଣ—

ହାତ ଚମ ଆଉ          କଥା କ କହେ ଲୋ
କହିବାକୁ କାହିଁ ବଳ ?
ହାଡ ପଡ଼ି ରହେ          ହାଡର ଠାବେ ଲୋ
ଆଶା ଆଉ ଏକ ପଳ !
ସୁକୁ ସୁକୁ କାହିଁ          ଢାଳିବ ଲୁହ ଲୋ
ଢୋଳିବ ଶ୍ୱାସଟି ଟାଣି,
ଧୁକୁ ଧୁକୁ ହୃଦେ          ତୁନ ମାଗୁଣି ଲୋ
ମରଣ ଲୋଡ଼ିଲା ଜାଣି ।
ହଅଁ ଦେବତାରେ          ଠାରୁଛି ଓଠ ଲୋ
ଯାଉ ଏ ଜୀବନ ଯାଉ,
ଅଚଳ ହୋଇନ          ସଚଳ ଦେହ ଲୋ
ତରୁତଳେ ଝୁରେ ଆଉ ।
ତରୁତଳେ ଝୁରେ          ଅଚଳ ଦେହ କ
ଜୀବନ ଯାଇନ ଉଡ଼ି ।
ଲାଗେ ସେ ଜୀଇଁଚି          ଗାଉଚି ଗୀତ ଲୋ
ପୀରତି-ରସରେ ବୁଡ଼ି ।
ଜୀଇଁ ରହିଚି ତା          ଜୀବନେ ପୀରତି
ଜୀଇଁଚି ଯୁଗକ ପାଇଁ,
ସକଳ ଯାତନା          କଷଣେ ତେଣୁ ଲୋ
ମଦନ ମରଣ କାହିଁ ?



—ସଇଁତରିଶ—